# ମହାନ ବ୍ୟକ୍ତିଙ୍କ ପିଲାଦିନ



ଡକ୍ଟର ଜଗନ୍ନାଥ ମହାନ୍ତି

# ମହାନ୍ ବ୍ୟକ୍ତିଙ୍କ ପିଲାଦିନ

ଲେଖକ :
ଡକ୍ଟର ଜଗନ୍ନାଥ ମହାନ୍ତି




କିଶୋର ପ୍ରକାଶନ

ଚାନ୍ଦିନୀଚୌକ, କଟକ-୨

# MAHAN BYAKTINKA PILA DINA

*Written by :*

**Dr. Jagannath Mohanty**

*Published by :*

**Kishore Nayak**
**KISHORE PRAKASHAN**
Post Box No.-536,
Chandinichowk, Cuttack-2

First Edition - 2007

*Cover Design :*

**Manoj Kumar Panda**

*Printed at :*

**Duduly Process & Offset,**
Bapuji Nagar, Bhubaneswar

**Price : Rs. 30.00**

# ମହାନ୍ ବ୍ୟକ୍ତିଙ୍କ ପିଲାଦିନ

ଲେଖକ :

ଡକ୍ଟର ଜଗନ୍ନାଥ ମହାନ୍ତି

ପ୍ରକାଶକ :

କିଶୋର ନାୟକ

କିଶୋର ପ୍ରକାଶନ
ପୋଷ୍ଟ ବକ୍ସ ନଂ-୫୩୬
ଚାନ୍ଦିନୀଚୌକ, କଟକ-୨

ପ୍ରଥମ ସଂସ୍କରଣ : ୨୦୦୭

ପ୍ରଚ୍ଛଦ :

ମନୋଜ କୁମାର ପଣ୍ଡା

ମୁଦ୍ରଣ :

ଡୁଡୁଲି ପ୍ରୋସେସ୍ ଆଣ୍ଡ୍ ଅଫ୍‌ସେଟ୍
ବାପୁଜୀ ନଗର, ଭୁବନେଶ୍ୱର

ମୂଲ୍ୟ : ଟ. ୩୦.୦୦

# ସୂଚୀ


ଗୁରୁ ଗୋବିନ୍ଦ ସିଂହଙ୍କ ପିଲାଦିନ — ୫
(ଗୋବିନ୍ଦ ସିଂହ)

ସେ ସବୁରି ମା' (ରମା ଦେବୀ) — ୧୧

ବଢ଼ି ନଈକୁ ଯେଉଁ ପିଲା ଡେଇଁ ପଡ଼ିଲା — ୧୬
(ବିଜୁ ପଟ୍ଟନାୟକ)

ଛୋଟ ପିଲାଟି ଭିତରେ ପୋଖତ ପଣ୍ଡିତ — ୧୯
(ଆବୁଲ କାଲାମ ଆଜାଦ)

ସତ କହିବାର ପୁରସ୍କାର — ୨୨
(ଗୋପାଳକୃଷ୍ଣ ଗୋଖଲେ)






# ଗୁରୁ ଗୋବିନ୍ଦ ସିଂହଙ୍କ ପିଲାଦିନ

ସେ ଦିନର ଜଣେ ଖୁବ୍ ଜଣାଶୁଣା ଫକୀର । ନାଁ ତାଙ୍କର ପୀର ଭିକନ ଶାହ । ସେ କେମିତି ଜାଣିପାରିଲେ ଯେ ପାଟଣା ସହରରେ ଗୋଟିଏ ପିଲା ଜନ୍ମ ହୋଇଛି । ସେ ଭଗବାନଙ୍କ ସଙ୍ଗେ ସଙ୍ଗେ ଗୁହାରି କଲେ । ତାଙ୍କୁ ଭକ୍ତିଭରା ପ୍ରଣାମ ଜଣାଇଲେ ।

ଦିନେ ପୀର ଭିକନ ପିଲାଟିକୁ ଦେଖିବାକୁ ପାଟଣା ଗଲେ । ସେଥିରେ ସେ ନେଲେ ଦୁଇ ମାଠିଆ ମିଠା । ଆଉ ଦୁଇଟି ଜାଗାରେ କ୍ଷୀର ଓ ନୀର । ମିଠା ମାଠିଆ ଦୁଇଟିକୁ ପିଲା ଆଗରେ ରଖିଦେଲେ । ପିଲାଟି ତାକୁ ଆଦରରେ ଜାବୁଡ଼ି ଧରିଲା । କ୍ଷୀର ଓ ପାଣିଥିବା ପାତ୍ର ଦୁଇଟିକୁ ଯେ ଢାଳିଦେଲା ।

## ପିଲାଟି ଥିଲା ଦେବଦୂତ

ପୀର ଭିକନଙ୍କ ମନ ଖୁସି ହୋଇଗଲା । ସେ ମଥା ନୁଆଁଇ ପିଲାଟିକୁ ପ୍ରଣାମ ଜଣାଇଲା । ସେ ଲୋକମାନଙ୍କୁ ବୁଝାଇଦେଲେ ଯେ, ଏଇ ପିଲା ଦେବଦୂତ । ସେ ନିଜର କାର୍ଯ୍ୟଦ୍ୱାରା ଜଣାଇଦେବ ଯେ ହିନ୍ଦୁ ମୁସଲମାନ ସଭିଏଁ ସମାନ । ସେମାନେ ଭାଇ ଭାଇ ।

ସେଇ ପିଲା ସମସ୍ତଙ୍କୁ ଭଲ ପାଉଥିଲେ । ସମସ୍ତଙ୍କ ସାଥିରେ ମିଶି ଯାଉଥିଲେ । ସବୁରି ସାଥିରେ ହସଖୁସି ଓ ସୁଖଦୁଃଖ ହେଉଥିଲେ । ପିଲାଠାରୁ ବଡ଼ଯାଏ ତାଙ୍କର ଆପଣାର ହୋଇଗଲେ । ଗୋବିନ୍ଦ ନାମରେ ସମସ୍ତେ ତାଙ୍କୁ ଜାଣିଲେ । ଆଦର କଲେ ।

## ପିଲାମାନଙ୍କ ନେତା

ପିଲାମାନଙ୍କର ସେ ହୋଇଥିଲେ ନେତା । ସେ ସେମାନଙ୍କୁ ନେଇ ଖେଳୁଥିଲେ ଆଉ ବୁଲୁଥିଲେ । କିପରି ନୂଆ ନୂଆ ଖେଳ ଖେଳିବାକୁ ହେବ, ସେ ତା'ର ଯୋଜନା କରୁଥିଲେ । ପିଲାମାନଙ୍କୁ ଦୁଇ ଦଳରେ ଭାଗକରି ସେ ପ୍ରତିଦିନ ମିଛି ମିଛିକିଆ ଲଢ଼େଇ କରୁଥିଲେ । ଯେଉଁ ଦଳ ଜିଣୁଥିଲେ ତାଙ୍କୁ ପୁରସ୍କାର ମିଳୁଥିଲା । ମାଆ ଗୁଜରୀ ଏସବୁ ଦେଖି ଖୁସି ହେଉଥିଲେ । ଖାଇବା ଜିନିଷ ବାଣ୍ଟୁଥିଲେ ।

ସେତେବେଳ ଦେଶକୁ ଶାସନ କରୁଥିଲେ ମୋଗଲ ନବାବ । ଲୋକଙ୍କ ଉପରେ ଭାରି ଜୁଲୁମ କରୁଥିଲେ । ସେମାନେ ଡରିମରି ଚଳୁଥିଲେ । କର୍ମଚାରୀମାନଙ୍କୁ ମଧ୍ୟ ଲୋକମାନେ ଦେଖି ଲୁଚି ପଳାଇ ଯାଉଥିଲେ । ଗୋବିନ୍ଦ କିନ୍ତୁ ଲୋକଙ୍କ ମନରେ ନୂଆ ସାହସ ଓ ନୂଆ ବଳ ଭରିଦେଲେ ।ସେ କାହାକୁ ଡରୁ ନଥିଲେ । କେହି ଧମକ ଦେଲେ ସେ ତା'ର ଉତ୍ତରଦେଉଥିଲେ ।

## ମୋଗଲ ଶାସନ ବିରୁଦ୍ଧରେ ଲଢ଼େଇ

ଗୋବିନ୍ଦ ପିଲାଦିନୁ ମୋଗଲ ଶାସନ ବିରୁଦ୍ଧରେ ଲଢେଇ କରିବାକୁ ନିଜକୁ ଗଢିଥିଲେ । ସବୁ ଅନ୍ଧ ବିଶ୍ୱ, ମିଛ ରୀତିନୀତି ବରୋଧରେ ନିଜର ମତ ସଫା ସଫା ଜଣାଇ ଦେଉଥିଲେ । ଟଙ୍କା ପଇସା ଓ ସୁନାରୂପା ପ୍ରତି ତାଙ୍କର ଆଦୌ ଲୋଭ ନ ଥିଲା । ଥରେ ନଦୀ କୂଳରେ ଖେଳୁଥିଲେ ଗୋବିନ୍ଦ । ତାଙ୍କ ହାତରୁ ଗୋଟିଏ ସୁନାବଳା ବାହାରି ଯାଇ ପାଣିରେ ପଡିଗଲା । ପାଣିରେ ବୁଡି ତାକୁ ବାହାର କରିବାକୁ ଜଣେ ଲୋକ ଆସିଲେ । ସେ ପଚାରିଲେ- ବଳାଟି କେଉଁଠି ପଡିଛି ? ଗୋବିନ୍ଦ ଆରପଟ ସୁନାବଳା ନଈ ଭିତରକୁ ଫିଙ୍ଗିଦେଇ କହିଲେ- ସେଇଠି ।



ଗୋବିନ୍ଦ ଲୁହା ଓ ଇସ୍ପାତ ତିଆରି ଅଳଙ୍କାର ବ୍ୟବହାର କରିବାକୁ ସମସ୍ତଙ୍କୁ କହୁଥିଲେ । କେହି ଆକ୍ରମଣ କଲେ, ତାକୁ ଅସ୍ତ୍ରରୂପେ ବ୍ୟବହାର କରିବାକୁ ଉପଦେଶ ଦେଉଥିଲେ । ଜଣେ ଧନୀ ଜମିଦାର ଫତେଚାନ୍ଦ । ତାଙ୍କର ପିଲାଛୁଆ ନଥିଲେ । ତଙ୍କ ସ୍ତ୍ରୀ ରାଣୀ ଗୋବିନ୍ଦଙ୍କ ମଧୁର ବ୍ୟବହାର ଓ ହସହସ ମୁହଁ ଦେଖି ଭାରି ଖୁସି ହୋଇ ଯାଇଥିଲେ । ତାଙ୍କପରି ପିଲାଟିଏ ପାଇବାକୁ ଖୁବ୍ ବନ କଲେ ।

## ରାଣୀଙ୍କ କୋଳରେ ବସି ମା ଡାକିଲେ

ଗୋବିନ୍ଦ ଏହା ଜାଣିପାରି ରାଣୀଙ୍କ ଘରକୁ ଗଲେ । ତାଙ୍କ ସାଥିରେ କେତେକ ସାଙ୍ଗ ପିଲା ବି ଗଲେ । ଗୋବିନ୍ଦ ରାଣୀଙ୍କ କୋଳରେ ବସି ତାଙ୍କୁ ମାଆ ବୋଲି ଡାକିଲେ । ସେ ତାଙ୍କୁ କହିଲେ ସାଙ୍ଗମାନଙ୍କୁ କିଛି ଖାଇବାକୁ ଦେବାକୁ । ରାଣୀ ଏଥିରେ ଭାରି ଖୁସି ହୋଇଗଲେ । ସେ ପୁରି ତରକାରୀ କରି ସେମାନଙ୍କୁ ଖାଇବାକୁ ଦେଲେ । ତାଙ୍କ ମୁହଁରୁ ଆନନ୍ଦର ଆଲୁଅ ଝରିପଡିଲା । ସେହିଦିନଠାରୁ ଫତେଚାନ୍ଦଙ୍କ ବଂଶରେ ପ୍ରତିବର୍ଷ ପିଲା ଓ ବଡମାନଙ୍କୁ ପୁରି ଓ ତରକାରୀ ଖାଇବାକୁ ଦିଆଯାଏ । ସମସ୍ତେ ଆନନ୍ଦରେ ଖିଆପିଆ କରନ୍ତି ।

ଗୋବିନ୍ଦଙ୍କର ପିଲାଦିନେ ତାଙ୍କ ବାପା ତେଗ୍‌ବାହାଦୂର ଆନନ୍ଦପୁରଠାରେ ତାଙ୍କ ପଢାପଢିରେ ବ୍ୟବସ୍ଥା କରିଥିଲେ । ସେ ସଂସ୍କୃତ, ପାର୍ସି ଓ ଅନ୍ୟ କେତୋଟି ଭାଷା ଶିକ୍ଷା କରିଥିଲେ । ଗୁରୁନାନକ ଓ ଅନ୍ୟ ଗୁରୁମାନଙ୍କର ଭଜନ ଜଣାଣ ସେ ପଢି ମନେ ରଖିଥିଲେ । ଘୋଡାଚଢା, ଖଣ୍ଡା ତରବାରୀ ଯୁଦ୍ଧ, ଧନୁଶର ବ୍ୟବହାର କରିବା ଆଦିରେ ସେ ଖୁବ୍ କୁଶଳୀ ଥିଲେ ।

୧୬୭୨ ମସିହାରେ ଗୋବିନ୍ଦ ସିଂହ ଆନନ୍ଦପୁର ସାହିବ ଗୁରୁଦ୍ୱାରକୁ ଯାଇଥିଲେ । ବାଟରେ ସେ ପୀର ଭିଜନଙ୍କୁ ଦେଖା କରିଥିଲେ । କାଶ୍ମୀରରୁ ବହୁ ପଣ୍ଡିତ ଆସି ତେଗ୍‌ବାହାଦୂରଙ୍କୁ ସେମାନଙ୍କର ଦୁଃଖ ଜଣାଉଥାନ୍ତି । ହିନ୍ଦୁମାନଙ୍କୁ ସେମାନଙ୍କ ଧର୍ମ ଛାଡି ଇସ୍‌ଲାମ ଧର୍ମ ଗ୍ରହଣ କରିବାକୁ ମୋଗଲ ସମ୍ରାଟ ଔରଙ୍ଗଜେବ୍ ବାଧ କରୁଥାନ୍ତି ।

## ହିନ୍ଦୁଙ୍କ ଉପରେ ଅତ୍ୟାଚାରକୁ ବିରୋଧ କଲେ

ଗୁରୁ ତେଗ୍‌ବାହାଦୂର ସେମାନଙ୍କଠାରୁ ଏହା ଶୁଣି ବ୍ୟସ୍ତ ହେଉଥାନ୍ତି । ଗୋବିନ୍ଦ ସିଂହ ସେଠାରେ ପହଞ୍ଚିଲେ । କିପରି ହିନ୍ଦୁମାନଙ୍କୁ ସାହାଯ୍ୟ କରିବେ ପଚାରିଲେ । ବାପା କହିଲେ- ଜଣେ ସନ୍ଥ ନିଜ ଜୀବନକୁ ବଳି ଦେଇ ହିନ୍ଦୁମାନଙ୍କୁ ସାହାଯ୍ୟ କରିପାରିବେ ।

ସେତେବେଳେ ଗୋବିନ୍ଦଙ୍କୁ ମାତ୍ର ନଅ ବରଷ । ସେ ବାପା ତେଗ୍‌ବାହାଦୁରଙ୍କୁ ଉତ୍ତର ଦେଲେ- ଆପଣଙ୍କଠାରୁ ଅଧିକ ସନ୍ଥ ଆଉ କିଏ ଅଛନ୍ତି ?

ତେଗ୍‌ବାହୁଦୂର ତାହା ହିଁ କରିଥିଲେ । ସେ କାଶ୍ମୀର ପଣ୍ଡିତମାନଙ୍କୁ ସାହସର ସହିତ ସମ୍ମୁଖୀନ ହେବାକୁ କହିଲେ ଏବଂ ନିଜେ ପ୍ରାଣବଳୀ ଦେଇ ସେମାନଙ୍କୁ ସାହାଯ୍ୟ କରିବେ ବୋଲି ଜଣାଇଥିଲେ । ମୋଗଲ ସମ୍ରାଟ ଏହା ଜାଣି ତାଙ୍କୁ ଦିଲ୍ଲୀକୁ ଡକାଇ ନେଇଥିଲେ । ହିନ୍ଦୁଧର୍ମର ରକ୍ଷା କରିବାକୁ ତେଗ୍‌ବାହଦୂର ସେଠାରେ ଶହୀଦ ହୋଇଥିଲେ ।

ଗୋବିନ୍ଦ ବାପାଙ୍କର ମୃତ୍ୟୁରେ ଭାଙ୍ଗି ପଡିଲେ । ମାତ୍ର ପୁଣି ସାହସ ଧରି ସେ ଶିଖ୍ ଓ ହିନ୍ଦୁମାନଙ୍କୁ ରକ୍ଷା କରିଥିଲେ । ଖୁବ୍ ଦକ୍ଷତାର ସହିତ ମୋଗଲ ସମ୍ରାଟଙ୍କର ମୁକାବିଲା କରିଥିଲେ । ସେ ଶିଖ୍‌ମାନଙ୍କର ଦଶମ ଗୁରୁ ହୋଇଥିଲେ । ସବୁରି ମନରେ ସାହସ ଓ ଦମ୍ଭ

ଖେଳାଇ ଦେଇଥିଲେ । ସବୁ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ନିର୍ଭର ଓ ବୀର ସୈନ୍ୟ ଭାବରେ ଲଢ଼େଇ କରିବାକୁ ସେ ଶିକ୍ଷା ଦେଇଥିଲେ ।

## ଶିଖମାନଙ୍କୁ ସିଂହ କହିଲେ

ଗୁରୁ ଗୋବିନ୍ଦ ସିଂହ୍ ଶିଷ୍ୟମାନଙ୍କୁ ସିଂହ ବୋଲି କହିଥିଲେ ଏବଂ ସିଂହ ପରି ଲଢେଇ କରିବାକୁ ପ୍ରେରଣା ଦେଇଥିଲେ । ସେ ସାରା ଜୀବନ ମୋଗଲ ସମ୍ରାଟଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଲଢେଇ କରିଥିଲେ । ଶିଖମାନଙ୍କୁ ଏକ ସେନାବାହିନୀ ରୂପେ ଗଢିଥିଲେ ଏବଂ ତାଲିମ୍ ଦେଇଥିଲେ । ମୋଗଲ ସୈନ୍ୟମାନଙ୍କୁ ସେ ତଳିତଳାନ୍ତ କରି ଦେଇଥିଲେ ।

ସମ୍ରାଟ ଔରଙ୍ଗଜେବ ଶେଷରେ ଗୁରୁ ଗୋବିନ୍ଦ ସିଂହଙ୍କ ସହିତ ସନ୍ଧି କରିବାକୁ ଭାବିଲେ । ମାତ୍ର ସେ ହଠାତ୍ ମୃତ୍ୟୁମୁଖରେ ପଡିଲେ । ଗୁରୁ ଗୋବିନ୍ଦଙ୍କର ଆଶୀର୍ବାଦ ନେଇ ମୋଗଲ ରାଜଗାଦିରେ ବସିଥିଲେ ବାହାଦୂର ଶାହ ।



# ଗ୍ରନ୍ଥସାହିବ ହେଲା ତାଙ୍କର ଗୁରୁ

୧୭୦୮ ମସିହା ଅକ୍ଟୋବର ୬ ତାରିଖ । ଗୁରୁ ଗୋବିନ୍ଦ ସିଂହ ଜାଣିପାରିଲେ ଯେ, ତାଙ୍କ ଜୀବନ ଦୀପ ଲିଭିବାକୁ ଯାଉଛି । ସେ ତାଙ୍କର ପ୍ରିୟ ଶିଷ୍ୟମାନଙ୍କୁ ଡକାଇଲେ । ସମସ୍ତଙ୍କ ଆଗରେ ଘୋଷଣା କଲେ ଯେ ସେମାନଙ୍କର ପବିତ୍ର ଧର୍ମଗ୍ରନ୍ଥ ''ଗ୍ରନ୍ଥ ସାହିବ'' ହେବ ସେମାନଙ୍କର ଗୁରୁ । ଆଉ କେହି ଜଣେ ଗୁରୁ ହୋଇ ରହିବେ ନାହିଁ । ସେମାନେ ସମ୍ମିଳନୀରେ ବିଚାର ଆଲୋଚନା କରି ସବୁ କରିବେ ।

ଗୁରୁ ଗୋବିନ୍ଦ ତାଙ୍କର ପ୍ରିୟ ନୀଳବର୍ଣ୍ଣର ପୋଷାକ ପିନ୍ଧିଲେ । ଅଣ୍ଟା ଚାରିପାଖରେ ହଳଦିଆ ପଟିଟିଏ ଭିଡିଦେଲେ । ମୁଣ୍ଡରେ ତାଙ୍କର ଶୋଭା ପାଇଲା ପଗଡି । ଧନୁଶର, ବର୍ଛା, କୃପାଣ ଓ ଢାଲରେ ସେ ନିଜକୁ ସଜାଇଦେଲେ । ଡାହାଣ ହାତରେ ବର୍ଛାଟିଏ ଧରି ସେ ନିଜର ପ୍ରିୟ ଘୋଡା ଉପରେ ବସି ପଡିଲେ । ଆଖି ପିଛୁଳାକେ ଘୋଡା ବିଜୁଳି ବେଗରେ ଛୁଟିଲା । ଏହା ଥିଲା ତାଙ୍କର ଶେଷଯାତ୍ରା ।

୧୭୦୮ ମସିହା ଅକ୍ଟୋବର ମାସ ୭ ତାରିଖରେ ସେ ସବୁଦିନ ପାଇଁ ଆଖି ବୁଜିଲେ । ଶିଷ୍ୟମାନେ ଗୁରୁଗ୍ରନ୍ଥ ସାହିବଙ୍କୁ ମାନି ଚଳିବେ ବୋଲି ଶପଥ ନେଲେ । ସେଥିରେ ନେଲେ । ସେଥିରେ ଲେଖାଥିବା ନୀତି ମାନି ଚଳିଲେ ଭଗବାନଙ୍କର ଆଶୀର୍ବାଦ ମିଳିବ ଏବଂ ସମେସ୍ତ ସୁଖଶାନ୍ତିରେ ରହିବେ ବୋଲି ସେ କହିଥିଲେ । ସବୁ ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ଲଢେଇ କରି ସାରା ମଣିଷ ସମାଜ ସୁଖ ଶାନ୍ତିରେ ଚଳିବା ପାଇଁ ସେ ଉପଦେଶ ଦେଇଥିଲେ ।





# ସେ ସବୁରି ମାଆ

ସେ ସବୁରି ମାଆ । ଓଡିଆ ଜାତିର ଆଦରର ମାଆ । ମାଆ ମନର ସବୁ ସ୍ନେହ ସରାଗ ଓ ସହାନୁଭୂତିକୁ ନେଇ ସେ ଗରିବ, ରୋଗୀ ଓ ବିପନ୍ନ ଲୋକମାନଙ୍କର ସେବା କରିଥିଲେ । ଓଡ଼ିଆ ବୋହୂଟିଏ ପରି ସେ ନିଜ ମୁଣ୍ଡରେ ଓଢଣା ଟାଣି ଦୁନିଆର ଦାଣ୍ଡକୁ ଗୋଡ କାଢିଥିଲେ ଏଥିପାଇଁ । ସେ ଥିଲେ ବଡ ଘରର ଝିଅ ଆଉ ବଡ ଘରର ବୋହୂ । ହେଲେ, ମାଟିର ମଣିଷ ପାଇଁ ସେ ସବୁ ସୁଖଶାନ୍ତିକୁ ପଛରେ ପକାଇ ମାଟି ମଣିଷର ଦୁଃଖ ଦୂର କରିବାକୁ ସାରା ଜୀବନ ବିତାଇ ଥିଲେ ।

## ରମା ଦେଓ ହେଲେ ସବୁରି ମାଆ

ସେଇ ମାଆ ହେଲେ ରମାଦେବୀ ଯେକି ଖଟକରେ ୧୮୯୯ ଡିସେମ୍ବର ମାସ ୩ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କ ବାପାଙ୍କ ନାଁ ଗୋପାଳବଲ୍ଲଭ ଦାସ ଆଉ ମାଆ ବସନ୍ତ କୁମାରୀ ଦେବୀ । ତାଙ୍କ ବାପା ଇଂରେଜ ଶାସନ କାଳରେ ଡିପୋଟୀ ଚାକିରୀ କରିଥିଲେ । ତାଙ୍କୁ ବାଘ ବି ବାଟ ଛାଡିଦେଉଥିଲା । ଧନ, କ୍ଷମତା ଓ ଆଡମ୍ବର, କେଉଁଥିରେ ଊଣା ନଥିଲା । ଫଳରେ ରମାଦେବୀ ଖୁବ୍ ସୁଖରେ ସବୁ ପାଠ ପଢିଥିଲେ ।

ତାଙ୍କୁ ପନ୍ଦର ବର୍ଷ ହେବାରୁ ସେତେବେଳର ଚଳଣି ଅନୁସାରେ ସେ ନୂଆ କରି ଡିପୋଟୀ ମାଜିଷ୍ଟ୍ରେଟ ହୋଇଥିବା ଗୋପବନ୍ଧୁ ଚୌଧୁରୀଙ୍କୁ ବିବାହ କରିଥିଲେ । ତାଙ୍କର ପୁଣି ଜମିଦାର ଘର । ସ୍ୱାମୀ ଥିଲେ ଭାରି ସ୍ୱାଧୀନଚେତା । ଆମ ଦେଶ ଯେତେବେଳେ ସ୍ୱାଧୀନତା ପାଇଁ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ଲଢେଇ କଲା ସେତେବେଳ ଗୋପବନ୍ଧୁ ଚୌଧୁରୀ ଏତେ ବଡ ସରକାରୀ ଚାକରି ଛାଡି ସେଥିରେ ଯୋଗଦେଲେ । ରମାଦେବୀ ବଡ ଘରର ବଡବୋହୂ । ଦୁଇଟି ପିଲାର ମାଆ । ହେଲେ, ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ମନ କଲେ । ଶାଶୁଙ୍କୁ କହିବାରୁ ସେ ମଧ ଅନୁମତି ଦେଲେ । ଏଥିପାଇଁ ସେ ଅସୁମାରି ଦୁଃଖକଷ୍ଟ ଭୋଗିଥିଲେ । ଜେଲଦଣ୍ଡ ପାଇଥିଲେ । ପୋଲିସର ଜୋରଜୁଲମ ସହିଥିଲେ । ହେଲେ, ସେ ଏଥିରେ ଦବିଯାଇ ନଥିଲେ । ଦମ୍ଭ ଧରି ନିଜ କର୍ତ୍ତବ୍ୟ ପଥରେ ଆଗେଇ ଥିଲେ ।

ଗାନ୍ଧିଜୀଙ୍କ ସାଥିରେ ରହି ରମାଦେବୀ ହରିଜନ ସେବା, ଖଦି ବ୍ୟବହାର, ନିଶା ନିବାରଣ ଆଦି ଦେଶଗଠନ କାର୍ଯ୍ୟରେ ସମୟ ବିତାଇଥିଲେ । ତା'ଫଳରେ ସେ ନିଜର ଦୁଇଟି ପିଲାଙ୍କର ଯତ୍ନ ନେଇପାରି ନ ଥିଲେ । ତେଣୁ ସେ ସେମାନଙ୍କୁ ଗାନ୍ଧିଜୀଙ୍କ ଆଶ୍ରମରେ ଛାଡିଦେଇଥିଲେ ।

## ଜେଲଦଣ୍ଡ ଭୋଗିଲେ

୧୯୬୧ ମସିହାରେ ଗାନ୍ଧିଜୀ ଓଡ଼ିଶାକୁ ଆସି କଟକରେ ଏକ ବିରାଟ ମହିଳା ସମ୍ମିଳନୀରେ ଭାଷଣ ଦେଇଥିଲେ । ରମାଦେବୀ ଏହାକୁ ଆୟୋଜନ କରିଥିଲେ । ଭାରତ ଚରଖା ସଙ୍ଘର ସଭ୍ୟ ହୋଇ ସୂତକଟା ଓ ଖଦିବୁଣା କାର୍ଯ୍ୟରେ ଲାଗିପଡିଥିଲେ । ବିଲାତୀ ଲୁଗା ନ ପିନ୍ଧିବା ପାଇଁ ସେ ସମସ୍ତଙ୍କୁ ଅନୁରୋଧ କରୁଥିଲେ ଆଉ ସେଇ ଲୁଗାକୁ ପୋଡିବାରେ ନେତୃତ୍ୱ ନେଇଥିଲେ ଓଡ଼ିଶାର ଲୁଣମରା ଆନ୍ଦୋଳନରେ ସେ ଆଗରେ ଥିଲେ । ଏଥିପାଇଁ ତାଙ୍କୁ କେତେଥର ଜେଲଦଣ୍ଡ ଭୋଗିବାକୁ ପଡିଥିଲା ।



ସ୍ୱାଧୀନତା ଆନ୍ଦୋଳନରେ ନାରୀମାନେ କିପରି ସକ୍ରିୟ ଭାଗ ନେଇପାରିବେ, ସେଥିପାଇଁ ସେ ଝିଅମାନଙ୍କୁ ସ୍ୱେଚ୍ଛାସେବିକା ତାଲିମ ଦେଇଥିଲେ । ସେ ବହୁଦିନ ହରିଜନ ସେବିକା ସଂଘର ସଂପାଦିକା ଥିଲେ । ଘର ଘର, ଗାଁ ଗାଁ ବୁଲି ସେ ହରିଜନ ବସ୍ତିରେ ସେଇ କାର୍ଯ୍ୟ କରୁଥିଲେ । ସେମାନଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଲାଗିପଡିଥିଲେ ।

## ବାପୁଜୀଙ୍କ ସହ ପଦଯାତ୍ରା

ଓଡ଼ିଶାରେ ଗାନ୍ଧିଜୀଙ୍କ ସହିତ ପଦଯାତ୍ରା କରିଥିଲେ । ମହିଳାମାନଙ୍କୁ ସ୍ୱାଧୀନତାର ଗୁରୁତ୍ୱ ବୁଝାଇଥିଲେ । ସୂତକଟା, ଲୁଗାବୁଣା, ହରିଜନ ସେବା ଆଦି କାର୍ଯ୍ୟରେ ସେମାନଙ୍କୁ ମିଶାଇଥିଲେ । ରାଜ୍ୟର ବିଭିନ୍ନ ସ୍ଥାନରେ କେନ୍ଦ୍ରମାନ ପ୍ରତିଷ୍ଠା କରି ଗ୍ରାମ ସଙ୍ଗଠନ, ମୌଳିକ ଶିକ୍ଷା, ଖଦିବୁଣା, ସୂତାକଟା ଆଦିକୁ ଲୋକପ୍ରିୟ କରିଥିଲେ । ବଢି, ମରୁଡି ଆଦି ବିପଦ ଆପଦରେ ସେ ଲୋକମାନଙ୍କୁ ଖାଦ୍ୟ, ଲୁଗାପଟା, ଔଷଧ ଆଦି ବାଣ୍ଟି ସେମାନଙ୍କର ସେବା କରିଥିଲେ ।

# ଦେଶ ସ୍ୱାଧୀନ ହେଲା

ଆମ ଦେଶ ସ୍ୱାଧୀନ ହେଲା । କିନ୍ତୁ କସ୍ତୁରବା ଓ ବାପୁଜୀଙ୍କ ପରି ରମାଦେବୀ ଓ ଗୋପବନ୍ଧୁ ସକ୍ରିୟ ରାଜନୀତି ଠାରୁ ଦୂରରେ ରହିଲେ । ଦୁଃସ୍ଥ ଲୋକମାନଙ୍କର ସେବା ଓ ଦେଶଗଠନ କାର୍ଯ୍ୟରେ ସେମାନେ ନିଜକୁ ଉତ୍ସର୍ଗ କରିଥିଲେ । ସେମାନେ ବିନୋବା ଭାବେଙ୍କ ଭୂଦାନ ଆନ୍ଦୋଳନରେ ମିଶି ଧନୀ ଲୋକଙ୍କ ଠାରୁ ଭୂମି ସଂଗ୍ରହ କରି ଭୂଇଁ ନ ଥିବା ଲୋକଙ୍କୁ ଦେଇଥିଲେ ।

୧୯୫୮ ମସିହାରେ ରମାଦେବୀ ସ୍ୱାମୀ ଗୋପବନ୍ଧୁ ଚୌଧୁରୀଙ୍କୁ ସବୁ ଦିନ ପାଇଁ ହରାଇ ବସିଥିଲେ । ଏହା ତାଙ୍କ ଜୀବନରେ ଏକ ମସ୍ତବଡ ଧକ୍କା । ମାତ୍ର ସମାଜ ସେବା ବ୍ରତରୁ ସେ ତିଳେ ହେଲେ ବିରତ ହୋଇ ନଥିଲେ । ବରଂ ସେତିକିବେଳେ ଶିଶୁ ଓ ମାତୃକଲ୍ୟାଣ ପାଇଁ ଏକ ସେବା ସମିତି ଗଢ଼ିଥିବଲେ । ବରିଠାରେ ଏକ ସମନ୍ୱୟ ସମିତି ଗଢି ସେ ଗଠନମୂଳକ କାର୍ଯ୍ୟ ସହିତ ଖଦି କାର୍ଯ୍ୟକୁ ଅଧିକ ଲୋକପ୍ରିୟ କରିଥିଲେ ।

୧୯୬୨ ମସିହାରେ ଚୀନ ଆମ ଦେଶକୁ ମାଡି ଆସିଲା । ଭାରତର ବହୁ ଜବାନ ପ୍ରାଣବଳି ଦେଲେ । ଅନେକ କିନ୍ତୁ ଆହତ ହୋଇ ସେମାଯତ୍ନ ଲୋଡ଼ିଥିଲେ । ରମାଦେବୀ ଆସାମକୁ ଯାଇ ସେମାନଙ୍କର ସେବା ଶୁଶ୍ରୂଷା କରିଥିଲେ ।

ତା' ପରେ ପରେ ଓଡ଼ିଶାରେ ଖୁବ୍ ଛାତ୍ର ଅଶାନ୍ତି ଘଟିଥିଲା । ରାଉରକେଲା ଆଦି ସ୍ଥାନରେ ଭାରି ହିଂସାକାଣ୍ଡ ଘଟି ଜନସାଧାରଣଙ୍କ ଜୀବନକୁ ବିପନ୍ନ କରିଥିଲା । ରମାଦେବୀ ଶାନ୍ତିସେନା ଗଢି ଲୋକମାନଙ୍କ ମଧ୍ୟରେ ଭଲ ବୁଝାମଣା ଆଣିପାରିଥିଲେ । ଓଡ଼ିଶା ସାରା ପାଦରେ ଚାଲି ସେ ଗ୍ରାମଦାନ ଆନ୍ଦୋଳନକୁ ଲୋକପ୍ରିୟ କରିଥିଲେ ।

କଳାହାଣ୍ଡି ଜିଲ୍ଲାରେ ମରୁଡିର କଳା ଅନ୍ଧାର ଘୋଟିଥିଲା । ଗରିବ ଲୋକମାନେ ଭୋକ ଉପାସରେ ପଡିଲେ । ଅଖାଦ୍ୟ ଖାଇ ନାନା ରୋଗର ଶିକାର ହେଲେ । ରମାଦେବୀ ସେମାନଙ୍କୁ ଆହାର ଯୋଗାଇବା ପାଇଁ ଅଣ୍ଟା ଭିଡି ବାହାରିଥିଲେ । ସେ ସମୟରେ ତାଙ୍କୁ ଭାରତ ସରକାର ପଦ୍ମଶ୍ରୀ ଉପାଧି ଦେଇଥିଲେ । ମାତ୍ର ଦୁଃସ୍ଥଲୋକଙ୍କ ଦୁଃଖ ଦୂର କରିବାରେ

ହେଳା କରିଥିବାରୁ ତା'ର ପ୍ରତିବାଦ କରି ସେହି ସମ୍ମାନକୁ ଫେରାଇ ଦେଇଥିଲେ । ସେ ଦିଲ୍ଲୀକୁ ସେତେବେଳରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ କଳାହାଣ୍ଡି ଅବସ୍ଥା ସମ୍ପର୍କରେ ଜଣାଇଥିଲେ ।

କଟକରେ ହିନ୍ଦୁ, ମୁସଲମାନ ଓ ବ୍ରହ୍ମପୁରରେ ହିନ୍ଦୁ, ଖ୍ରୀଷ୍ଟିଆନ ଗଣ୍ଡଗୋଳବେଳେ ସେ ଶନ୍ତି ଓ ଶୃଙ୍ଖଳା ରକ୍ଷା କରିଥିଲେ । କୁଷ୍ଠରୋଗୀମାନଙ୍କର ସେବା ପାଇଁ ଗୋଟିଏ ଅନୁଷ୍ଠାନ ଗଢିଥିଲେ । ରମାଦେବୀଙ୍କର ନୀରବ ଓ ନିଷ୍ଠାପର ସେମାଜସେବା କାର୍ଯ୍ୟ ଦେଖି ଗାନ୍ଧିଜୀ ଥରେ କହିଲେ, ଓଡ଼ିଶା ପରି ରାଜ୍ୟରେ ଶ୍ରୀମତୀ ରମାଦେବୀ ଅଳ୍ପ କେତେକ ମହିଳାଙ୍କୁ ନେଇ ଯେମିତି କାର୍ଯ୍ୟ କରୁଛନ୍ତି, ତା'ର ତୁଳନା ନାହିଁ ।

## ସମ୍ମାନ ଆପେ ଆପେ ଆସିଲା

୧୯୮୧ ମସିହାରେ ରମାଦେବୀଙ୍କୁ ଅତୁଳନୀୟ ସେବା କାର୍ଯ୍ୟ ପାଇଁ ଯମୁନାଲାଲ୍ ବଜାଜ ପୁରସ୍କାର ମିଳିଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ମଧ୍ୟ ତାଙ୍କୁ ଉଚ୍ଚତମ ଉପାଧି ପ୍ରଦାନ କରିଥିଲେ । ସେ କିନ୍ତୁ ଏସବୁକୁ ପସନ୍ଦ କରି ନପାରି କହିଥିଲେ, ମୋର ସମ୍ମାନ ଲୋଡା ନାହିଁ, ଉପାଧି ଲୋଡା ନାହିଁ । ଗରିବ ଦୁଃଖୀ ଲୋକଙ୍କ ମୁହଁରେ ହସ ଟିକେ ଫୁଟିଲେ ସେଇ ମୋର ବଡ ପୁରସ୍କାର ।

ଆମ ସବୁରି ମାଆ ଶ୍ରୀମତୀ ରମାଦେବୀ । ୮୬ ବର୍ଷ ବୟସରେ ସେ ଆମଠାରୁ ସବୁଦିନ ପାଇଁ ବିଦାୟ ନେଲେ । ମାତ୍ର ଶେଷ ନିଃଶ୍ୱାସ ଛାଡିବାଯାଏ ସେ ଏଇ ମାଟିର ସେବା କରିଯାଇଛନ୍ତି । ମାଆର ସବୁ ସ୍ନେହ ସରାଗ ସେ ଆମ୍ଭମାନଙ୍କ ଉପରେ ଢାଳି ଦେଇଛନ୍ତି । ଆମେ ଅନ୍ୟ ଆଖିରୁ ଲୁହପୋଛି ଶୁଖିଲା ମୁହଁରେ ଆନନ୍ଦର ହସ ଉକୁଟାଇ ପାରିଲେ, ତାଙ୍କର ଆତ୍ମା ଶାନ୍ତି ପାଇବ । ଏହା ହେବ ତାଙ୍କ ପ୍ରତି ଆମର ପବିତ୍ର କର୍ତ୍ତବ୍ୟ ।





# ବଢ଼ିନଈକୁ ଯେଉଁ ପିଲା ଡେଇଁ ପଡିଲା

ନିଝୁମ ବର୍ଷାଦିନ । ଭୟଙ୍କର ନଈବଢି । ଓଡ଼ିଶା ତଳି ଅଞ୍ଚଳର ଅନେକ ଗାଁ ଗଣ୍ଡା ବଢି ପାଣିରେ ଭାସି ଗଲାଣି । ଲୋକମାନେ ବହୁ ଦିନରୁ ଉପାସ ପଡିଛନ୍ତି । ରୋଷେଇ କରିବାକୁ ଜିନିଷ ନାହିଁ କି ଚୁଲୀ ଲଗାଇବାକୁ ଥାନ ନାହିଁ

## ପିଲାଦିନୁ ଦେଶସେବା

ଏତିକି ବେଳକୁ ଅସାରାକୁ ଅନ୍ଧରା ବରଷା କାଟି ହେଉଛି । ସ୍ତ୍ରୀ ପିଲାମାନଙ୍କର ବିକଳ କାନ୍ଦଣା ଗଗନ ପବନ ଥରାଇ ଦେଉଛି । ଏହି ସମୟରେ ଖରସୁଆ ନଈଟିରେ ଗୋଟିଏ ନାଆ ଚାଲିଚି । ଉତ୍କଳମଣି ଗୋପବନ୍ଧୁ କେତେକ ସ୍କୁଲପିଲାଙ୍କୁ ସାଥୀରେ ନେଇ ଧୋଇଆ ଅଞ୍ଚଳରେ ଭୋକିଲା ଲୋକମାନଙ୍କ ମଧ୍ୟରେ ଚୁଡ଼ା, ଗୁଡ, ମୁଢି ବାଣ୍ଟିବା ପାଇଁ ସେଇ ନାଆରେ ଚାଲିଛନ୍ତି ।

ଝିପ୍ ଝିପ୍ ହୋଇ ବର୍ଷା ହେଉଛି । ଥରେ ଥରେ ବତାସିଆ ପବନ ବି ଝାଙ୍କି ହେଉଛି । ଉତ୍କଳମଣିଙ୍କ ହାତରୁ ଛତଟା କିପରି ନଈ ପାଣିରେ ଖସିପଡିଲା । ନଈରେ ତ ଭୀଷଣ ସୁଅ, ସାପ ମୁଣ୍ଡ ଦିଖଣ୍ଡ ହେଉଛି । ନଈ ଘୁ ଘୁ ଗର୍ଜନ କରୁଛି । ଛତା ଆଖି ପିଛୁଳାକେ ଦୂରକୁ ଭାସିଗଲା । ହଠାତ୍ ନାଆରେ ବିସିଥିବା ପିଲାମାନଙ୍କୁ ମଧ୍ୟରୁ ଜଣେ ନଈ ଭିତରକୁ ଖପ୍ କରି ଡେଇଁ ପଡିଲା ।

## ନଈସୁଅରୁ ଛତାକୁ ଛାଣି ଆଣିଲା

ନଈର ଉଛୁଳା ଟାଣ ସୁଅରେ ଭାସିଯାଇ ସେ ପିଲାଟି ଛତାଟିକୁ ଧରିଲା । ବହୁ କଷ୍ଟରେ ସୁଅ କାଟି ପୁଣି ନାଆ ପାଖକୁ ଫେରି ଆସିଲା । ମୁହଁ ତାର ହସ ହସ । ପିଲାମାନେ ଏହା ଦେଖି ବଡ ଆଶ୍ଚର୍ଯ୍ୟ ହେଲେ । ଗୋପବନ୍ଧୁଙ୍କ କଅଁଳ ହୃଦୟରେ ପିଲାଟିର ଅପୂର୍ବ ସାହସ ଓ ସାହାଯ୍ୟ କରିବା ମନୋବୃତ୍ତି ଅଲିଭା ଦାଗ ଟାଣିଦେଲା । ସେ ଅତି ଆନନ୍ଦିତ ହୋଇ ପିଲାଟିକୁ ଆଶୀର୍ବାଦ କଲେ ଏବଂ ତୋର ନାଁ ଓ ବାପାଙ୍କ ଠିକଣା ବୁଝି ନେଲେ । ତାଙ୍କର ବାପାଙ୍କ ନାମ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ଜଣେ ବଡ ଓକିଲ ଓ ଦେଶ ସେବକ ।



ଗୋପବନ୍ଧୁ ତାଙ୍କ ପାଖକୁ ଚିଠି ଦେଲେ । ସେଥିରେ ଅନ୍ୟ କଥା ଭିତରେ ଲେଖିଥିଲେ- ତୁମ ପୁଅର ସାହସ ଧୈର୍ଯ୍ୟ ଦେଖି ମୁଁ ଅବାକ୍ ହେଲି । ସେ ବଡ ହେଲେ ନିଶ୍ଚୟ ଜଣେ ସାହସୀ ଓ ପ୍ରସିଦ୍ଧ ବ୍ୟକ୍ତି ହେବ । ଦେଶ ଓ ଦଶର ମଙ୍ଗଳ କରିବ ।

## ପିଲାଟି କିଏ ?

ସେ ପିଲାଟି କିଏ ? ତୁମେ ତାଙ୍କୁ ଭଲକରି ଜାଣିଚ । ସେ ତୁମର ଅତି ଅପାଣାର । ଆମ ଦେଶର ଆଉ ଆମ ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୟାନନ୍ଦ ପଟ୍ଟନାୟକ । ଜଣେ ବଡ ଜାତୀୟ ନେତା ଭାବରେ ସେ ସୁପରିଚିତ । ତାଙ୍କର ଅସାଧାରଣ ସାହସ ସହାନୁଭୂତି ଓ ବିଚକ୍ଷଣତା ବଳରେ ସେ ଆଜି ଓଡ଼ିଶାରେ କାହିଁକି ଭାରତରେ ମଧ୍ୟ ଅତି ଜଣାଶୁଣା ହୋଇପାରିଛନ୍ତି । ସେ ମଧ୍ୟ ଭାରତର ଜଣେ ବିଖ୍ୟାତ ବିମାନଚାଳକ ଶିଳ୍ପପତି । ତାଙ୍କ ଚେଷ୍ଟାରେ ପାରାଦ୍ୱୀପ ବନ୍ଦର ଗଢାଯାଇଥିଲା । ଆମ ରାଜ୍ୟରେ ବହୁ ଶିଳ୍ପ ଓ ଶିକ୍ଷାନୁଷ୍ଠାନ ବସାଇଥିଲେ । ନିଜ ବୁଦ୍ଧିବଳରେ ଦେଶରୁ ସେ ଦୁଃଖ ଦାରିଦ୍ର୍ୟ ଓ ନିରକ୍ଷରତା ଦୂର କରିବାକୁ ଆପ୍ରାଣ ଚେଷ୍ଟା କରିଥିଲେ । କଳିଙ୍ଗ ପୁରସ୍କାର ନାମରେ ଏକ ପୁରସ୍କାରର ବ୍ୟବସ୍ଥା କରି ପୃଥିବୀ ପ୍ରସିଦ୍ଧ ହୋଇଛନ୍ତି । ପୃଥିବୀର ବଡ ବିଜ୍ଞାନ ସାହିତ୍ୟ ଲେଖକଙ୍କୁ ଏହି ଲୋଭନୀୟ ପୁରସ୍କାର ଦିଆଯାଏ ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କର ସେ ଦିନର କଥା ଅକ୍ଷରେ ଅକ୍ଷରେ ସତ ହେଲା ।





# ଛୋଟ ପିଲାଟି ଭିତରେ ପୋଖତ ପଣ୍ଡିତ

ଥରେ ଲାହୋରଠାରେ ମୁସଲମାନଙ୍କର ଗୋଟିଏ ବିରାଟ ସଭାର ଆୟୋଜନ ହୋଇଥିଲା । ଏହି ସଭାରେ ସାରା ଭାରତର ବଡ ବଡ ପଣ୍ଡିତ, ଲେଖକ ଓ ଜଣାଶୁଣା ମୁସଲମାନ ନେତା ଯୋଗ ଦେଇଥିଲେ ।

## ସିଦ୍ଧିକ ପତ୍ରିକାର ଲୋକପ୍ରିୟ ସଂପାଦକ

ସେତେବେଳ ଲିସାନୁଲ୍ ସିଦ୍ଧିକ୍ ନାମରେ ଗୋଟିଏ ଉର୍ଦ୍ଦୁ ପତ୍ରିକା କଲିକତା ସହରରୁ ପ୍ରକାଶ ପାଉଥିଲା । ଏହି ପତ୍ରିକାଟିରେ ଅତି ଭଲ ଲେଖାଗୁଡିଏ ବାହାରୁଥିଲା । ଏହି ଲେଖାଗୁଡ଼ିକର ଭାଷା ଓ ଭାବ ଅତି ଉତ୍କୃଷ୍ଟ ହେଉଥିଲା । ଭାରତୀୟ ଲୋକମାନଙ୍କର ଆଶା, ନିରାଶା, ଆପତ୍ତି ଅଭିଯୋଗ, ଅଭାବ ଅସୁବିଧା ଅତି ନିର୍ଭୀକ ଭାବରେ ସାଥିରେ ପ୍ରକାଶ ପାଉଥିଲା । ଅନେକ ଶାସ୍ତ୍ର ପୁରାଣରୁ ଉଦାହରଣ ଦିଆଯାଇ ଦେଶର ବିଭିନ୍ନ ସମସ୍ୟା ବିଷୟରେ ଅତି ସରଳ ଭାବରେ ଲେଖାଯାଉଥିଲା ।

ଏହି ଲୋକପ୍ରିୟ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ଲାହୋରଠାରେ ହେଉଥିବା ମୁସଲମାନ ସମ୍ମିଳନୀର ମୁଖ୍ୟବକ୍ତା ଥିଲେ । ତେଣୁ ଗାଁ ଗହଳିର ଲୋକ ମଧ୍ୟ ତାଙ୍କର ଦର୍ଶନ ପାଇବା ସଙ୍ଗେ ସଙ୍ଗେ ଭାଷଣ ଶୁଣିବା ପାଇଁ ବହୁ ସଂଖ୍ୟାରେ ସେହି ସଭାରେ ଯୋଗ ଦେଇଥିଲେ । ସମସ୍ତେ ବଡ ଆଗ୍ରହରେ ଚାହିଁ ରହିଥାନ୍ତି କେତେବେଳେ ପ୍ରଧାନ ବକ୍ତା ଭାଷଣ ଦେବେ । ପ୍ରତିକାର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନାରୁ ସମସ୍ତ ଧାରଣା କରି ନେଇଥିଲେ ଯେ ଲିସାନୁଲ ସିଦ୍ଦିକ୍‌ର ସମ୍ପାଦକ ମହାଶୟ ଜଣେ ବୟସ୍କ ଆଉ ପୋଖତ ଲୋକ ହୋଇଥିବେ । ବହୁତ ବୁଢା ମୁସଲମାନ ପଣ୍ଡିତ ବଡ ଆଶାରେ ତାଙ୍କଠାରୁ ଭାଷଣ ଶୁଣିବାକୁ ଅପେକ୍ଷା କରିଥାନ୍ତି ।

## ପୋଖତ ପଣ୍ଡିତ ଆସନରେ ତରୁଣ ବାଳକ

କିନ୍ତୁ ସମସ୍ତେ ବଡ ନିରାଶ ହେଲେ । ସେମାନେ ଦେଖିଲେ ଯେ, ପ୍ରଧାନ ବକ୍ତାଙ୍କ ସ୍ଥାନରେ ଗୋଟିଏ ସତର ବର୍ଷର ତରୁଣ ବାଳକ ବସିଛି । ଲୋକଙ୍କ ଭିତରୁ ବହୁତ ଆପତ୍ତି ହେଲା । ଜଣେ ଲୋକପ୍ରିୟ ସମ୍ପାଦକଙ୍କ ନାମ ମିଛରେ କହି ଅନେକ ଲୋକଙ୍କୁ ସଭାକୁ ଆଣିବାର ଫିକର ହୋଇଛି ବୋଲି ସେମାନେ ଆଲୋଚନା କଲେ । କେତେକ କହିଲେ- ସମ୍ଭବତଃ ସମ୍ପାଦକ ବିଶେଷ କାରଣରୁ ଆସି ପାରିଲେ ନାହିଁ । ତାଙ୍କର ପୁଅକୁ ପଠାଇଛନ୍ତି । ସେ ସେହି ବିଷୟରେ କହିବେ । କେତେକ କେବଳ ସମ୍ପାଦକଙ୍କଠାରୁ କିଛି ଶୁଣିବାକୁ ଆଶା କରିଆସିଥିଲେ । ସେମାନେ ନିରାଶ ହୋଇ ସଭାରୁ ଚାଲିଯିବାକୁ ବସିଲେ ।

ଏହି ସମୟରେ ସଭାପତି ମହାଶୟ ଉଠି କହିଲେ- ଭାଇମାନେ ବର୍ତ୍ତମାନ ଆମ ଏ ସଭାର ପ୍ରଧାନ ବକ୍ତା ଲିସାନୁଲ୍ ସିଦ୍ଦିକ୍ ପତ୍ରିକାର ସୁଯୋଗ୍ୟ ସମ୍ପାଦକ ମହାଶୟଙ୍କୁ ଭାଷଣ ଦେବାକୁ ଅନୁରୋଧ କରୁଛି ।

## ସମସ୍ତେ ଅବାକ୍ ହେଲେ

ସମସ୍ତେ ବଡ ବିସ୍ମିତ ହେଲେ । ସମ୍ପାଦକ ମହାଶୟ କହନ୍ତି ? ପ୍ରଧାନ ବକ୍ତା ତେବେ କିଏ ? ଏଇ ପିଲାଟି ତେବେ କ'ଣ ଲିସାନୁଲ ସିଦ୍ଦିକ୍ ପତ୍ରିକାର ସମ୍ପାଦକ ? ବଡ ଆଶ୍ଚର୍ଯ୍ୟର କଥା !



ପ୍ରଧାନ ବକ୍ତା ମହାଶୟ ଯେତେବେଳେ ଠିଆହୋଇ ଧୀର ଗମ୍ଭୀର ସ୍ୱରରେ ତାଙ୍କର ଭାଷଣ ଆରମ୍ଭ କଲେ, ସଭାର ସମସ୍ତ ଲୋକ ଅବାକ୍ ହେଲେ । କି ଉଚ୍ଚ ଭାବଧାରା ! କି ସରଳ ତରଳ ଭାଷା ? ଭାଷଣର କି କୁହୁକ ଶକ୍ତି । ସମସ୍ତେ ତଟସ୍ଥ ହୋଇ ଶୁଣୁଥିଲେ, ଆଉ ମନେ ମନେ ଭାବୁଥିଲେ- ଯାହାଙ୍କୁ ସେ ଛୋଟ ପିଲାଟିଏ ବୋଲି ଭାବୁଥିଲେ, ତାଙ୍କରି ଭିତରେ ଜଣେ ବଡ ପୋଖତ ପଣ୍ଡିତ ଲୁଚି ରହିଛନ୍ତି । ଏ ବାଳକଟି ତ କମ୍ ନୁହେଁ । ଏ ବଡ ହେଲେ ଦେଶର ବହୁତ ବଡ କାମ କରିବ । ପିଲାଦିନୁ ସେ ବହୁଶାସ୍ତ୍ର ପୁରାଣ ପାଠ କରିଥିଲେ ଅନେକ କଥା ସେ ମନେ ରଖି ପାରୁଥିଲେ ।

## ଅନୁମାନ ସତ ହେଲା

ସେଦିନ ସେମାନେ ଯାହା ଅନୁମାନ କରିଥିଲେ ସେଇଆ ସତ ହେଲା । ସେ ଆବୁଲ କାଲାମ ଆଜାଦ୍ ନାମରେ ପରିଚିତ ହେଲେ । ଉର୍ଦ୍ଦୁ, ଆରବୀ ପ୍ରଭୃତି କେତେକ ଭାଷାରେ ବଡ ପଣ୍ଡିତ ଥିଲେ । ସେ ଭାରତର ସ୍ୱାଧୀନତା ଲଢେଇରେ ଜଣେ ପ୍ରଧାନ ସେନାପତି ଥିଲେ । ଲୋକପ୍ରିୟ ନେତା, ବକ୍ତା, ରାଜନୀତିଜ୍ଞ ଭାବରେ ସେ ଭାରି ଜଣାଶୁଣା ହୋଇଥିଲେ । ସ୍ୱାଧୀନ ଭାରତରେ ସେ ମୃତ୍ୟୁ ପର୍ଯ୍ୟନ୍ତ ଶିକ୍ଷାମନ୍ତ୍ରୀ ଥିଲେ । ତାଙ୍କୁ ଭାରତରତ୍ନ ଉପାଧି ପ୍ରଦାନ କରାଯାଇଥିଲା ।





# ସତ କହିବାର ପୁରସ୍କାର

ଥରେ ଗୋଟିଏ ବିଦ୍ୟାଳୟରେ ଜଣେ ଶିକ୍ଷକ ପିଲାମାନଙ୍କୁ ଖଣ୍ଡେ ଗଣିତ ପ୍ରଶ୍ନ ଦେଇ ଘରେ ତା'ର ଉତ୍ତର ଲେଖି ଆଣିବାକୁ କହିଥିଲେ । ପ୍ରଶ୍ନଟି ଅତି ଭିଡ ହୋଇଥିବାରୁ ତା' ପରଦିନ ଶିକ୍ଷକ ମହାଶୟ ଯେତେବେଳେ ଉତ୍ତର ମାଗିଲେ ଜଣକ ପରେ ଜଣେ ତାହା କରିପାରି ନାହାନ୍ତି ବୋଲି କହିଲେ । ଯେଉଁ ଅଳ୍ପ କେତେଜଣ ପିଲା ଉତ୍ତର କରି ଆଣିଥିଲେ, ସେମାନଙ୍କର ଉତ୍ତର ଭୁଲ ହୋଇଥିଲା । କିନ୍ତୁ ଗୋଟିଏ ପିଲାର ଉତ୍ତର ଠିକ୍ ହୋଇଥିଲା । ଶିକ୍ଷକ ମହାଶୟ ତେଣୁ ବଡ ଖୁସି ହୋଇଯାଇ ତାକୁ କହିଲେ- ତୁମେ ଶ୍ରେଣୀରେ ସବୁଠାରୁ ଭଲ ପିଲା । ଆଜିଠାରୁ ଆଗ ଧାଡିରେ ବସିବ । ଅନ୍ୟମାନେ କିଛି ପଢୁନାହାନ୍ତି ।

## ଠିକ୍ ଉତ୍ତର ଦେଇଥିବା ପିଲା କଇଁ କଇଁ କାନ୍ଦିଲା

କିନ୍ତୁ ଏହି ପିଲାଟି ଶିକ୍ଷକଙ୍କର କଥା ଶୁଣି କଇଁ କଇଁ ହୋଇ କାନ୍ଦିଲା । ସାଥୀ ପିଲାମାନେ ଓ ଶିକ୍ଷକ ମହାଶୟ ଏହା ଦେଖି କାବା ହୋଇଗଲେ । ଗୁରୁଜୀ ପାଖକୁ ଆସି

କଅଁଳେଇ ପଚାରିଲେ ତୁମେ କାନ୍ଦୁଛ କାହିଁକି ? ତୁମର ଉତ୍ତର ଠିକ୍ ଥିଲା । ତୁମେ ଭଲ ପଢୁଛ ବୋଲି ତୁମକୁ ଆଜିଠାରୁ ଆଗ ବେଞ୍ଚରେ ବସିବାକୁ କୁହାଗଲା ।

ପିଲାଟି କିନ୍ତୁ ସେହପରି କାନ୍ଦି କାନ୍ଦି କହିଲା- ଗୁରୁଜୀ, ମୁଁ ଭଲ ପିଲା ନୁହେଁ । ମୁଁ ଆଗ ବେଞ୍ଚରେ ବସିବାକୁ ଉପଯୁକ୍ତ ନୁହେଁ । ମୁଁ ଏ ଉତ୍ତର ନିଜେ କରିନାହିଁ । ଉପର ଶ୍ରେଣୀରେ ପଢୁଥିବା ମୋର ଜଣେ ସାଙ୍ଗଠାରୁ ଏହା ବୁଝି କରିଛି । ମୋର ଦୋଷ କ୍ଷମା କରନ୍ତୁ ମହାଶୟ, ମୁଁ ଆଉ ଦିନେ ଏମିତି ଭୁଲ୍ କରିବି ନାହିଁ ।

## ଗୁରୁଜୀ ତାକୁ ଆଗ ଧାଡିରେ ବସାଇଲେ

ଗୁରୁଜୀ ମହାଶୟ ଓ ସାଙ୍ଗ ପିଲାମାନେ ଏକଥା ଶୁଣି ବଡ ଆନନ୍ଦିତ ହେଲେ । ଗୁରୁଜୀ ହସି ହସି କହିଲେ- ତୁମେ ସତ କହିବାରୁ ତୁମକୁ ଆଜିଠାରୁ ଆଗ ଧାଡ଼ିରେ ବସିବାକୁ ଅନୁମତି ଦେଲି ।

କିନ୍ତୁ ସେ ପିଲାଟି ଆଗରେ ବସିବାକୁ କୁଣ୍ଠିତ ହେବାରୁ ଶିକ୍ଷକ ମହାଶୟ ନିଜେ ତାକୁ ଆଗ ବେଞ୍ଚରେ ବସାଇ ଦେଲେ । ସେହିଦିନଠାରୁ ଗୁରୁଜୀ ତାକୁ ବଡ ସ୍ନେହ କଲେ । ସାଥୀ ପିଲାମନେ ତାକୁ ଭାରି ଆଦର କଲେ । ପରେ ବଡ ହେବାରୁ ସେ ଦେଶବାସୀଙ୍କର ବିଶ୍ୱାସୀ ଓ ସତ୍ୟବାନ୍ ହୋଇ ବହୁତ ସୁନାମ ଅର୍ଜନ କଲା ଏବଂ ଜୀବନରେ ବହୁତ ଉନ୍ନତି କଲା ।

## ସେଇ ପିଲାଟି କିଏ ?

ଏବେ ଏ ପିଲାଟି କିଏ ତୁମେ ଜାଣିଲ ? ଏ ହେଉଛନ୍ତି ଗୋପଳକୃଷ୍ଣ ଗୋଖଲେ । ଆମ ଦେଶର ଜଣେ ବଡ ଦେଶସେବକ ଓ ଜନନେତା । ସେ ବଡ ବିଦ୍ୱାନ, ବକ୍ତା ଓ ଲୋକସେବକ ଥିଲେ । ତାଙ୍କର ସତ୍ୟନିଷ୍ଠ ଓ ସହାନୁଭୂତି ଗୁଣ ଯୋଗୁ ସଭିଏଁ ତାଙ୍କୁ ଅତି ସ୍ନେହ ଓ ଭକ୍ତି କରୁଥିଲେ । ଦେଶରେ ଶିକ୍ଷାର ପ୍ରସାର ପାଇଁ ବହୁ ଉଦ୍ୟମ କରିଥିଲେ । ପ୍ରଥମେ ସେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାକୁ ଆଇନ ଆଣିଥିଲେ । ସେ ଗଣିତ

ଓ ରାଜନୀତି ଉପରେ ଅନେକ ବହି ଲେଖିଛନ୍ତି । ଭାରତ ସେବକ ସମାଜ ନାମକ ଏକ ଅନୁଷ୍ଠାନ ଗଢି ସେ ଦେଶର ଅନେକ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ । ସେ ମରିଥିଲେ ମଧ୍ୟ ତାଙ୍କର ଅନେକ ଅନୁଷ୍ଠାନ ଓ କାର୍ଯ୍ୟକଳାପ ଏବେ ସୁଦ୍ଧା ସକ୍ରିୟ ରହି ତାଙ୍କୁ ଅମର ଓ ଚିରସ୍ମରଣୀୟ କରିଛି । ଆମ ଜାତିର ପିତା ମାହାତ୍ମା ଗାନ୍ଧି କହୁଥିଲେ- ରାଜନୀତି କ୍ଷେତ୍ରରେ ସେ ତାଙ୍କର ଗୁରୁ ଥିଲେ ।

